# ଜାଣେ ଅନୁଭବୀ ଅନୁଭବରେ

## ଏକ ଅଧ୍ୟୟନାତ୍ମକ ଅନୁଭବ

ମହାପାତ୍ର ନୀଳମଣି ସାହୁ

# ହୃଦାନନ୍ଦ ରାୟଙ୍କ ଆତ୍ମ-ଜୀବନୀ ପଢ଼ିଲାପରେ...

ମହାପାତ୍ର ନୀଳମଣି ସାହୁ

ମୋର ପାରିବାରିକ ଓ ମାନସିକ ଅବସ୍ଥା ଯେତେବେଳେ ଘୋର ମେଘାଚ୍ଛନ୍ନ ଥିଲା-ଏପରିକି ମୁଁ ଯେତେବେଳେ ଏକ ଚୈତିକ ସଙ୍କଟ ଭିତରେ ପଡ଼ିଥିଲି-ସେତେବେଳେ ମୁଁ ମୋର ଜଣେ ପୂଣ୍ୟାତ୍ମା ଅନ୍ତରଙ୍ଗ ବନ୍ଧୁର ସାନ୍ନିଧ୍ୟ ଖୁବ୍ ତୀବ୍ରଭାବରେ ଲୋଡୁଥିଲା ଅବସ୍ଥାରେ ମୋ ହାତରେ ପଡ଼ିଲା ଆଧୁନିକ ସାଂସ୍କୃତିକ ଉତ୍କଳର ଅନ୍ୟତମ ସ୍ରଷ୍ଟା ଓ ନିର୍ମାତା, କଳିଙ୍ଗ ଭାରତୀଙ୍କର ଆଦରଣୀୟ ବରପୁତ୍ର, ସାଂପ୍ରତିକ ଉତ୍କଳ ଆକାଶରେ ଦେଦୀପ୍ୟମାନ ଏକ ଉଜ୍ଜ୍ୱଳ ନକ୍ଷତ୍ର, ମୋର ପରମ ଅନ୍ତରଙ୍ଗ ସଖା ପ୍ରଫେସର ଶ୍ରୀଯୁକ୍ତ ହୃଦାନନ୍ଦ ରାୟଙ୍କର ବିରାଟ ଆତ୍ମ-ଜୀବନୀ । ସେତେବେଳେ ମୁଁ ତାଙ୍କର ଏକାନ୍ତ ଘନିଷ୍ଠ ଚୈତିକ ଓ ଦୈହିକ ସାନ୍ନିଧ୍ୟ ତୀବ୍ରଭାବେ ଚାହିଁ ବସିଥିଲି । ସେ କିନ୍ତୁ ସେତେବେଳେ ଏକ ପକ୍ଷକାଳ ଓଡ଼ିଶା ବାହାରକୁ ଚାଲିଗଲେ । ମୋର କ୍ଷୀଣଦୃଷ୍ଟିଶକ୍ତି ସତ୍ତ୍ୱେ ପରମ ଶ୍ରଦ୍ଧା ଓ ଆଗ୍ରହ ନେଇ ମୁଁ ସେ ବହିଟିକୁ ପଢ଼ିଚାଲିଲି ଏବଂ ଠିକ୍ ଏକପକ୍ଷପରେ ସହସ୍ରପୃଷ୍ଠାର ବହିଟିକୁ ପଢ଼ି ଶେଷକଲି । ସେତେବେଳକୁ ହୃଦାନନ୍ଦ ବାବୁ ଓଡ଼ିଶା ଫେରି ଆସିଥିଲେ ।

କିନ୍ତୁ ଆଶ୍ଚର୍ଯ୍ୟ କଥା-ତାଙ୍କର ଦୈହିକ ସାନ୍ନିଧ୍ୟର ଅଭାବ ପୂରଣ କରିଥିଲା ତାଙ୍କର ଏହି ଆତ୍ମଜୀବନୀଟି । ସତକୁ ସତ ମୁଁ ବହିଟି ପଢ଼ିଲାବେଳେ ତାଙ୍କୁ ମୋ ପାଖରେ ଦୈହିକ ସ୍ଥିତିରେ ଅନୁଭବ କରୁଥିଲି- ଭାଗବତ ପଢ଼ିଲାବେଳେ ଶ୍ରୀକୃଷ୍ଣଙ୍କର ଦୈହିକ ଅନୁଭବ

ପାଇଲା ପରି- ରାମଚରିତମାନସ ପଢ଼ିଲାବେଳେ ଶ୍ରୀରାମଙ୍କର ଦୈହିକ ସ୍ପର୍ଶ ପାଇଲା ଭଳି-ବାଇବେଲ ପଢ଼ିଲାବେଳେ ଯୀଶୁଖ୍ରୀଷ୍ଟଙ୍କ ଦୈହିକ ସଂଲଗ୍ନତାର ଅନୁଭବ ଭଳି । ଏଥିରେ ତାଙ୍କର ବାଲ୍ୟକାଳରୁ ୧୯୯୫ ମସିହା ପର୍ଯ୍ୟନ୍ତ ଜୀବନାଲେଖ୍ୟ ଲିପିବଦ୍ଧ ହୋଇଛି ।

ବହିଟି ପଢ଼ିଲାବେଳେ ବୋଧ ହେଉଥିଲା- ସତେକି ସେ ମୋ ପାଖରେ ବସିଛନ୍ତି- ଖଟରେ ଶୋଇଛନ୍ତି- ବା ଆମେ ଦୁହେଁ ଏକାଠି ଚାଲୁଛୁ- ଏବଂ ସେହି ଅବସ୍ଥାରେ ସେ ତାଙ୍କର ଆତ୍ମକାହାଣୀ ଅପୂର୍ବ ପ୍ରଗଳ୍ଭତାରେ ଗଭୀର ସ୍ୱରରେ ମୋ ଆଗରେ କହି ଚାଲିଛନ୍ତି !! ସେତ ସହଜେ କଳିଙ୍ଗ ଭାରତୀ ମା' ସାରଳାଙ୍କର ସୁଯୋଗ୍ୟ ସାରସ୍ୱତ ମୁଖପାତ୍ର ! ଅହେତୁକୀ ଗେହ୍ଲାପଣରେ ମା' ସାରଳା ତାଙ୍କ ଜିହ୍ୱାରେ ଅହରହ ନୃତ୍ୟ କରୁଥାନ୍ତି ଅଥବା ବୀଣାବାଦନ କରୁଥାନ୍ତି ! ସେଥିପାଇଁ ମୁଁ ତାଙ୍କ ସ୍ୱର ଭିତରେ ଉତ୍କଳଜନନୀଙ୍କର ଉଦାର ମଧୁର ଧ୍ୱନି ଶୁଣିପାରେ ଏବଂ ତା' ସହିତ ମଧ୍ୟ ଶୁଣିପାରେ ଭାରତମାତାଙ୍କର ପୁରାଣ ପରମ୍ପରାରୁ ଉଦ୍‌ଗତ ସେହି ପରମ ରହସ୍ୟମୟ ଶାଶ୍ୱତ ଉଦାତ୍ତ ବାକ୍ୟମାନଙ୍କର ଧ୍ୱନି ଓ ପ୍ରତିଧ୍ୱନି । ତାଙ୍କର ଆତ୍ମ-କାହାଣୀଟିକୁ ମଧ୍ୟ ସେ ପୁରୀ ବଡ଼ଦାଣ୍ଡରେ ମାଇକ୍ ଆଗରେ ଜଗନ୍ନାଥଙ୍କ ରଥଯାତ୍ରାର ଧାରାବିବରଣୀ ଭଳି ଅନର୍ଗଳ କହି ଯାଇଛନ୍ତି । ତେଣୁ ତାଙ୍କ ବହି ପଢୁଥିଲାବେଳେ ସେହିସବୁ ବାକ୍ୟଭିତରେ ମୁଁ ତାଙ୍କର ବଡ଼ଦାଣ୍ଡିଆ କଣ୍ଠସ୍ୱର ମଧ୍ୟ ଶୁଣିପାରୁଥିଲି । କି ସୁନ୍ଦର ! କି ପବିତ୍ର ! କି ଆସ୍ଥା ଓ ପ୍ରତ୍ୟୟ ସୃଷ୍ଟିକାରୀ ବାକ୍ୟସବୁ । ଛଳ କପଟହୀନ, କୃତ୍ରିମ ପରିପାଟୀ ହୀନ ସ୍ୱଚ୍ଛ ହୃଦୟର ବକ୍ତବ୍ୟ । ବକ୍ତବ୍ୟ ନା ପ୍ରବଚନ !! ତେଣୁ ମୋର ଅନ୍ତରାତ୍ମାକୁ ସେ ସବୁ ସ୍ପର୍ଶ କରିଯାଉଥାଏ । ଫଳରେ ମୋତେ ଲାଗୁଥାଏ- ଏଇ ଦୁର୍ଦ୍ଦିନ କାଳରେ ସତେକି ସେ ମୋ ପାଖରେ ବସିଛନ୍ତି ଓ ମୋତେ ଆଶ୍ୱାସନା ଦେଉଛନ୍ତି ।

ସେ କେବଳ ଏ ବହିରେ ନିଜ ଜୀବନର ଘଟଣା ଗୁଡ଼ିକର ବିବରଣୀ ଦେଇନାହାନ୍ତି । ସେ ଜୀବନର ଅର୍ଥ ଖୋଜିଛନ୍ତି- ଜୀବନର ଲକ୍ଷ୍ୟ ଖୋଜିଛନ୍ତି ଓ ଜୀବନଯାତ୍ରାର ମାର୍ଗ ପ୍ରଦର୍ଶକକୁ ମଧ୍ୟ

ଖୋଜିଛନ୍ତି । ଜୀବନର ଘୋର ଅନ୍ଧକାରମୟ ଝଡ଼ଝଂଜାକୀର୍ଣ୍ଣ ରାତ୍ରି ଭିତରେ ସେ ଆଲୋକର ସନ୍ଧାନ କରିଛନ୍ତି- ଜୀବନର ମଧୁର ରମଣୀୟ ସମୁଜ୍ଜ୍ୱଳ ଦିବସମାନଙ୍କ ପଛରେ ପରମ ସଚ୍ଚିଦାନନ୍ଦମୟଙ୍କର ମଙ୍ଗଳମୟ ହସ୍ତର ବରଦ କଲ୍ୟାଣ ମୁଦ୍ରା ମଧ୍ୟ ସେ ଦେଖିଛନ୍ତି ଓ ଦେଖାଇଛନ୍ତି । ନିଜ ଜୀବନର ଘଟଣାମାନଙ୍କର ଧାରାବିବରଣୀ ଦେବା ସହିତ ସେ ମଧ୍ୟେ ମଧ୍ୟେ ପ୍ରାସଙ୍ଗିକ ଭାବେ ସାହିତ୍ୟର ଭାବରସ ମାଧୁର୍ଯ୍ୟ, ଦର୍ଶନଶାସ୍ତ୍ରର ଗୂଢ଼ ରହସ୍ୟମୟ ତତ୍ତ୍ୱ ଗୁଡ଼ିକର ଚିନ୍ତନ, ମନନ, ଇତିହାସର ତାତ୍ପର୍ଯ୍ୟପୂର୍ଣ୍ଣ ସାମୟିକ ତଥ୍ୟାବଳୀ, ଅତୀତ ଓ ବର୍ତ୍ତମାନ ଭିତରେ ବିସ୍ତାରିତ ହୋଇଥିବା ସ୍ଥାନଗୁଡ଼ିକର ଭୌଗୋଳିକ ବାସ୍ତବତା, ଜୀବନ ରଙ୍ଗମଞ୍ଚରେ ବିଚିତ୍ରଭାବେ ଅଭିନୀତ ହୋଇ ଚାଲିଥିବା ବିଦଗ୍ଧ ନାଟକୀୟତା, ସ୍ଥାନକାଳ ପାତ୍ରର ବୈଚିତ୍ର୍ୟ ଭିତରେ ଏକ ଆଧ୍ୟାତ୍ମିକ ସାମ୍ୟସ୍ଥିତି- ସବୁକିଛି ସେ କହି ଚାଲିଛନ୍ତି । ତେଣୁ ତାଙ୍କ ଆତ୍ମ-ଜୀବନୀଟି ହୋଇ ଉଠିଛି ତାଙ୍କର ଜୀବନଦର୍ଶନ ଏବଂ ବହୁସ୍ଥଳରେ ତାଙ୍କର ହୃଦୟର କାବ୍ୟ ଭାରତୀ ବା ଅନ୍ତରାତ୍ମାର ଅଧ୍ୟାତ୍ମ ଉପଲବ୍ଧି । ବହିଟିକୁ ‘ଅମୃତବିନୟବଚନ, କହି ତୋଷିବ ପ୍ରାଣୀମନ’’ ଭଳି ଭାଗବତୀ ଭାଷାରେ ସେ ଲେଖିଛନ୍ତି ।

ହୃଦାନନ୍ଦବାବୁଙ୍କ ସହ ମୋର ଦୀର୍ଘ ଚାଳିଶବର୍ଷର ଗଭୀର ବନ୍ଧୁତା ରହିଆସିଛି- ମୁଁ ତାଙ୍କୁ ଭଲ ଭାବେ ଜାଣେ । ତାଙ୍କ ବିଷୟରେ ମୋର ଯାହାସବୁ ଧାରଣା ଥିଲା ସେଗୁଡ଼ିକ ଦୃଢ଼ଭାବେ ପ୍ରମାଣିତ ହୋଇଛି ତାଙ୍କ ଆତ୍ମ-ଜୀବନୀ ଭିତରେ । ଜୀବନଠାରୁ ନାନାବିଧ ବିଡ଼ମ୍ବନା ସହ୍ୟ କରି ନାନା ଘାତପ୍ରତିଘାତର ସମ୍ମୁଖୀନ ହୋଇ ମଧ୍ୟ ସେ ଜୀବନବିମୁଖ ହୋଇନାହାନ୍ତି । ବରଂ ଜୀବନ ପ୍ରତି କୃତଜ୍ଞ ରହିଛନ୍ତି ଓ ଜୀବନକୁ ଆହୁରି ମହାନ୍ ଆଉ ମାଧୁର୍ଯ୍ୟ ମଣ୍ଡିତ କରିବା ଲାଗି ନିଜ ଭିତରେ ଗଭୀର ଆକୁତି ଅନୁଭବ କରିଛନ୍ତି ଓ ସେ ଦିଗରେ ନିଷ୍ଠାପର ଉଦ୍ୟମ ମଧ୍ୟ କରି ଆସିଛନ୍ତି । ଅମଣିଷମାନଙ୍କ ଦ୍ୱାରା ଅଧ୍ୟୁଷିତ ଓ ବିପର୍ଯ୍ୟସ୍ତ ଏଇ ପୃଥିବୀରେ ମନୁଷ୍ୟର ମହିମା ପ୍ରତିଷ୍ଠା କରିବା ପାଇଁ ସେ ନିଜର ବ୍ୟକ୍ତିଗତ ଜୀବନରେ ଓ ସାମାଜିକ ଜୀବନରେ ଖୁବ୍ ବ୍ୟାକୁଳ ପ୍ରଚେଷ୍ଟା ମଧ୍ୟ କରି ଆସିଛନ୍ତି । ତାଙ୍କର

ଜୀବନ-ଚର୍ଯ୍ୟା ସେଥିଯୋଗୁ ହୋଇ ଉଠିଛି ସ୍ୱତଃ ଏକ ଜୀବନ-ସାଧନା । କିନ୍ତୁ ତାଙ୍କ ଜୀବନ ସାଧନାରେ କୌଣସି ତୀବ୍ର କୃଚ୍ଛ୍ରତା ନାହିଁ । ଅନ୍ୟପକ୍ଷରେ ହୃଦାନନ୍ଦଙ୍କ ଜୀବନ ସାଧନା ସ୍ୱାଭାବିକ ଓ ସାବଲୀଳ ଭାବରେ ସହଜ ଛନ୍ଦରେ ଗତି କରିଆସିଛି ଆଜିପର୍ଯ୍ୟନ୍ତ । କୌଣସି ପ୍ରକାର ସିଦ୍ଧି ହୁଏତଃ ସେ ପାଇନାହାନ୍ତି କି ସିଦ୍ଧିପାଇଁ ବ୍ୟାକୁଳତା ମଧ୍ୟ ଦେଖାଇ ନାହାନ୍ତି । ଅସରନ୍ତି ପଥର୍ ପଥିକ ସେ । କୋଉଠି ଠାଏ ପହୁଁଚିଯାଇ ସେଠି ଅଟକି ରହିଯାଇନାହାନ୍ତି । ସ୍ୱର୍ଗୀୟ ଉଦ୍ୟାନରେ ପୁଷ୍ପମଧୁ ସଂଗ୍ରହ କରିଚାଲିଛନ୍ତି ସାରାଜୀବନ ସ୍ୱର୍ଗର ପ୍ରଜାପତିଟିଏ ଭଳି । ତାଙ୍କର ଜୀବନ-ନାଟକର ପୃଷ୍ଠସଂଗୀତ ହେଉଛି- "ଏ ସୃଷ୍ଟି ଅମୃତମୟ ହେ"- କିମ୍ବା "ମଧୁରାଧିପତେ ଅଖିଳଂ ମଧୁରଂ ।"

ତାଙ୍କୁ ବହୁଲୋକ ଭଲ ପାଇଛନ୍ତି । ସେ ମଧ୍ୟ ବହୁ ଲୋକଙ୍କୁ ତାଙ୍କର ଅନାବିଳ ହୃଦୟର ପ୍ରେମ ବାଣ୍ଟିଛନ୍ତି । କାହାପ୍ରତି ତାଙ୍କର ବିଦ୍ୱେଷ ନାହିଁ, ଅଭିଯୋଗ ନାହିଁ କି ଅସୂୟା ଅଭିସଂପାତ ନାହିଁ । କାରଣ ତାଙ୍କର ମୁଖ୍ୟ ଯାତ୍ରାସଂଗୀତଟି ହେଉଛି- ସର୍ବେ ଭବନ୍ତୁ ସୁଖିନଃ ! ଭାଗ୍ୟ ବିଧାତା ବା ସ୍ୱୟଂ ପରମେଶ୍ୱରଙ୍କୁ ମଧ୍ୟ କବିସୂର୍ଯ୍ୟଙ୍କ ଲଘୁ ଶୈଳୀରେ ପରିହାସରେ ମଧ୍ୟ ଗାଳି ଭର୍ତ୍ସନା କରିନାହାନ୍ତି । ନିଷ୍ଠୁର ବିଦ୍ରୂପ ବାଣୀ ତାଙ୍କ ପବିତ୍ର ସାରସ୍ୱତ ଜିହ୍ୱାଗ୍ରକୁ ସ୍ପର୍ଶ ମଧ୍ୟ କରିପାରେ ନାହିଁ । ନିୟତିକୁ ସେ ତାଙ୍କର ଦୁର୍ଗତି ପାଇଁ ଦାୟୀ କରିନାହାନ୍ତି । ଦୁଃଖ, କଷ୍ଟ, କଷଣ, ଅପମାନ- ଏପରିକି ରୋଗ ବୈରାଗ ଓ ପ୍ରାଣାଧିକା ପରମ ଆତ୍ମୀୟା ଜାନକୀଙ୍କ ସଦୃଶା ପତ୍ନୀ ବିୟୋଗରେ ମଧ୍ୟ ସେ ନିଜର ଦୁଃଖାଗ୍ନିକୁ ମହାନ ବନସ୍ପତି ପରି ନିଜର ହୃଦ୍‌କୋଟରରେ ଲୁଚାଇ ରଖିଛନ୍ତି । ସେ ନିଆଁର ତାତି ବା ଧାସ ପର୍ଯ୍ୟନ୍ତ ମଧ୍ୟ ଆଉ କାହାର ଦେହମନରେ ବାଜିବାକୁ ଦେଇନାହାନ୍ତି । ଗଙ୍ଗାଙ୍କ ପରି ତାଙ୍କର ହୃଦୟ ବିଶଦ ଆଉ ଗଭୀର ଏବଂ ଗଣ୍ଠିଧନ ତାଙ୍କର କେବଳ ସ୍ନେହ ଓ ଶୁଭେଚ୍ଛା । ନିଜର ଦୁଃଖରେ ସେ କାହାକୁ ଭାଗୀଦାର ହେବାକୁ ଦେଇନାହାନ୍ତି । କିନ୍ତୁ ନିଜ ଜୀବନରେ ଯାହା କିଛି ସୁଖ, ଆନନ୍ଦ ବା ଆହ୍ଲାଦ ସେ ପାଇଛନ୍ତି- ସେ ସବୁ ସେ ଏକା ଭୋଗି ନାହାନ୍ତି ବରଂ ସମସ୍ତଙ୍କ ସହ ଏକାଠି

ମିଳିମିଶି ମହୋତ୍ସବ ଉପଭୋଗ କରିଛନ୍ତି । ଅନ୍ୟଠାରୁ ଆଘାତ ପାଇଛନ୍ତି- କିନ୍ତୁ ଅନ୍ୟକୁ ପ୍ରତ୍ୟାଘାତ ଦେଇନାହାନ୍ତି । ଈଶ୍ୱରଙ୍କର କୃପା ପାଇଛନ୍ତି- କିନ୍ତୁ ସେହି କୃପାକୁ ସେ ଅନ୍ୟମାନଙ୍କୁ ବାଣ୍ଟିଦେଇଛନ୍ତି । ତାଙ୍କ ବ୍ୟତୀତ ସେ ଆଉ କାହାର କୃପାପାତ୍ର ହେବାକୁ ଚାହିଁନାହାନ୍ତି ।

ସେ ନିଜେ ବାସ୍ତବରେ ଯାହା ଏବଂ ସମଗ୍ର ଦେଶରେ ସେ ଏହି ଦୀର୍ଘ ସତୁରୀବର୍ଷକାଳ ନିଜ ପାଇଁ ଯେଉଁ ଭାବରୂପ ସୃଷ୍ଟି କରିଛନ୍ତି ଏହି ବହିଟି ପଢ଼ିଲା ବେଳେ ମୁଁ ତାଙ୍କର ସେହି ରୂପକୁ ଇ ମୋ ଅନ୍ତର ଭିତରେ ଦେଖି ପାରିଛି । ବେଳେ ବେଳେ ସେ ନିଜେ ଚିନିରେ ତିଆରି କଣ୍ଢେଇ ଟିଏ ଭଳି ଲାଗନ୍ତି ।

ଏକ ଶୁଦ୍ଧ, ଉଜ୍ଜ୍ୱଳ, ସରଳ, ସହଜ, ଭଦ୍ର, ଭବ୍ୟ ଜୀବନର ଅଧିକାରୀ ହୃଦାନନ୍ଦ ରାୟ । ଶୁଭେଚ୍ଛା ଓ ସହୃଦୟତାର ଜୀବନ୍ତ ବିଗ୍ରହ ସେ । ତାଙ୍କର ଜୀବନ ପ୍ରତି ଓ ସଂସାରପ୍ରତି କୁତ୍ରାପି ବିରକ୍ତ ପ୍ରତିକ୍ରିୟା ପ୍ରକାଶ ପାଇନାହିଁ । ବରଂ ସଂସାର ଓ ଜୀବନପ୍ରତି ତାଙ୍କର ରହିଛି ଏକ ଅନୁରକ୍ତ ବିଶ୍ୱସ୍ତ ଉପଲବ୍ଧି ।

ସେ ସାରା ଜୀବନ ଜୀବନର ମରୁଭୂମିରେ ଅଦମ୍ୟ ଉତ୍ସାହରେ ବଳରାମଙ୍କ ପରି ହଳବୁଲାଇ କୃଷି ଆରମ୍ଭ କରିଛନ୍ତି । ଶ୍ମଶାନର ଭସ୍ମରାଶି ଭିତରୁ ସେ ମହାଜୀବନର ମହାବୀଜ ଅନ୍ୱେଷଣ କରିଛନ୍ତି । ନୀଳାଚଳର ବଡ଼ଦାଣ୍ଡରେ ଧୂଳିବାଲିରେ ହଜିଯାଇଥିବା ମହାତ୍ମା ମହାପୁରୁଷମାନଙ୍କର ପାଦଚିହ୍ନ ସେ ଅଣ୍ଡାଳି ଅଣ୍ଡାଳି ଖୋଜି ବୁଲିଛନ୍ତି । ସାରା ଆକାଶରେ ହାତ ବୁଲାଇଛନ୍ତି ସେ ଆକାଶ କୁସୁମ ପାରିଜାତଟିଏ ତୋଳିବା ପାଇଁ । କିନ୍ତୁ ଜୀବନର ସଫଳତା ବା ବିଫଳତାକୁ ସେ ଗ୍ରାହ୍ୟ କରି ନାହାନ୍ତି । ଏକ ଦିବ୍ୟଶିଶୁର ମନ ନେଇ ସେ ଜୀବନକୁ ଏକ ଦିବ୍ୟଲୀଳା ରୂପେ ବୁଝିଛନ୍ତି ଓ ଖେଳିଛନ୍ତି । ସେ ନିଜର ଶକ୍ତି ସାମର୍ଥ୍ୟର ସୀମା ସମ୍ବନ୍ଧେ ଖୁବ୍ ସଚେତନ । କିନ୍ତୁ ମନୁଷ୍ୟର ମହିମାକୁ ଘୋଷଣା କରିବା ପାଇଁ ସେ ଉଚ୍ଚକିତ ସ୍ୱରରେ ତୁରୀ ବାଦନ କରିଆସିଛନ୍ତି । କାଶୀର ମହା ଶ୍ମଶାନରେ ମଡ଼ାଚଣ୍ଡିଆ ବେଶରେ ମହାରାଜା ହରିଶ୍ଚନ୍ଦ୍ରଙ୍କୁ ଦେଖି ସେ କାତର ନହୋଇ ଘୋଷଣା କରିଛନ୍ତି ବଜ୍ର ନିର୍ଘୋଷରେ- ''ବିଶ୍ୱନାଥଙ୍କର ଏହି ମହା

ଶ୍ମଶାନରେ ସତ୍ୟପାଇଁ ମଡ଼ାଚଣ୍ଡିଆ ଭୂମିକାରେ ଓହ୍ଲାଇଥିବା ମହାରାଜା ହରିଶ୍ଚନ୍ଦ୍ର ତାଙ୍କ ରାଜମହିମାରେ ସ୍ୱର୍ଗର ଦେବରାଜ ଇନ୍ଦ୍ରପଦକୁ ମଧ୍ୟ ତୁଚ୍ଛ କରିଦେଇଛନ୍ତି ।'' ସେଥିପାଇଁ ପାଇବାର ଲୋଭ ଓ ନପାଇବାର ଗ୍ଲାନି ତାଙ୍କ ଶୁଭ୍ରସୁନ୍ଦର ଜୀବନକୁ ସାମାନ୍ୟଭାବେ ବି ମଳିନ କରିନାହିଁ ।

ହୃଦାନନ୍ଦ ଜୀବନର କୁଟିଳ ଜାଲ ଭିତରେ ବନ୍ଦୀ ହୋଇ ନାହାନ୍ତି । କେବେ ଜାଲରେ ପଡ଼ିଲେ ବି, ସେ ଜାଲସୁଦ୍ଧା ଧରି ଆକାଶରେ ଚିତ୍ରଗ୍ରୀବ ନାମା କପୋତରାଜଙ୍କ ପରି ଉଡ଼ିଯାଇଛନ୍ତି ଜାଲ ଛେଦନକାରୀ ତାଙ୍କର ବନ୍ଧୁ ହିରଣ୍ୟକ ନାମା ମୂଷିକ ରାଜାଙ୍କ ପାଖକୁ । ଅତୀତ ଜୀବନରେ ହୃଦାନନ୍ଦ ଥିଲେ ମାୟାବାଦୀ । ଜାଲକୁ ସେ ସଂସାରର ମାୟା-ପ୍ରତୀକ ରୂପେ ଗ୍ରହଣ କରିଥିଲେ । କିନ୍ତୁ ଯେବେଠାରୁ ସେ ମହାମାୟାଙ୍କ କୃପା ଲାଭ କଲେ ସେବେଠାରୁ ସେ ଆଉ ମାୟାକୁ ଭୟ କରି ତା ପାଖରୁ ପଳାୟନ କରି ନାହାନ୍ତି । ମାୟାକୁ ପରିଣତ ଜୀବନରେ ସେ ବରଂ ଅବଜ୍ଞା କରିଛନ୍ତି । ମାୟାଧରଙ୍କୁ ଚିହ୍ନିଲା ପରେ ସେ ମାୟା ପ୍ରତି ଆଉ ଭ୍ରୂକ୍ଷେପ କରି ନାହାନ୍ତି । ସେ ଉପଲବ୍ଧି କରିଛନ୍ତି- ଯେ ମାୟାଧର- ସେହି ମଧ୍ୟ ଲୀଳାନିଧି । ଯାହା ନିମ୍ନ ସ୍ତରରେ ମାୟା- ତାହାହିଁ ଉର୍ଦ୍ଧ୍ୱସ୍ତରରେ ଲୀଳା । ଶେଷ ପର୍ଯ୍ୟନ୍ତ ହୃଦାନନ୍ଦଙ୍କ ଜୀବନ ଲୀଳାମଧୁର ହୋଇରହିଛି । ସେଥିପାଇଁ ଏଇ ପରିଣତ ଜୀବନରେ ବି ସେ ଜୀବନକୁ ନେଇ ପ୍ରଚୁର ହସିଛନ୍ତି ଓ ହସାଇଛନ୍ତି । ସେ ଏକ ସଂଗରେ ଜୀବନର ଦୁଇପାର୍ଶ୍ୱକୁ ଦେଖିଛନ୍ତି । ସେଥିଯୋଗୁଁ ସେ ହାସ୍ୟ ଓ ରୋଦନକୁ ଏବଂ ଗୁରୁ ଓ ଲଘୁକୁ ଏକ ମୁଦ୍ରାର ଦୁଇ ବିପରୀତ ପାର୍ଶ୍ୱବୋଲି ନିଜ ଜୀବନରେ ମଧ୍ୟ ପ୍ରମାଣିତ କରିଚାଲିଛନ୍ତି । ତେଣୁ ସେ କେବେ କାହାକୁ ଉପହାସ କରିନାହାନ୍ତି- କିନ୍ତୁ ପରିହାସ ନିପୁଣତାରେ ହୃଦାନନ୍ଦଙ୍କ ବାକ୍‌ବିଳାସ ଅତୁଳନୀୟ ।

ଏକଥା କିନ୍ତୁ ସତ ଯେ ହୃଦାନନ୍ଦ ଜୀବନର ଅଶ୍ଳୀଳ, ଜଘନ୍ୟ, କୁତ୍ସିତ ଓ ବୀଭତ୍ସ ଦିଗପ୍ରତି ଆଖି ବୁଜି ଦେଇଛନ୍ତି । ତାଙ୍କ ଦେହରେ ପଙ୍କ ଲାଗିନି- ପଙ୍କୁଆ ଗନ୍ଧବି ବାଜିନାହିଁ । ପଣ୍ଡିଚେରୀ, ପୁଟ୍ଟପର୍ତ୍ତି, କାଶୀ, ବୃନ୍ଦାବନ, ଦ୍ୱାରକା, ପୁରୀ, ରାମେଶ୍ୱର, ଋଷିକେଶ ପ୍ରଭୃତି

ମହାନ ପବିତ୍ର ତୀର୍ଥମାନଙ୍କର ପବିତ୍ର ଧୂପ ଧୂଆଁରେ ତାଙ୍କ ଶରୀର ସୁବାସିତ, ହୃଦୟ ସୁରଭିତ ଓ ମନ ସୁଗନ୍ଧିତ । ଆସନଟିଏ ପଡ଼ିନଥିଲେ ସେ ହୁକିନା ମାଟି ଉପରେ ବସି ଯିବେ ନାହିଁ ।

ହୃଦାନନ୍ଦ ଜଣେ ଯୋଗୀ ନହୋଇ ପାରନ୍ତି କିନ୍ତୁ ସେ ଜଣେ ଜୀବନ-ସାଧକ । ଜୀବନକୁ ସେ କେବଳ ବଂଚିନାହାନ୍ତି- ଜୀବନକୁ ସେ ସାଧି ସାଧି ଚାଲିଛନ୍ତି । ସେ ଜଣେ ମହାଜ୍ଞାନୀ ବ୍ୟକ୍ତି । ଜ୍ଞାନ ତାଙ୍କ ଜୀବନକୁ ଗଭୀର କରିଛି- ଉଜ୍ୱଳ କରିଛି । କିନ୍ତୁ ଜ୍ଞାନଭାରରେ ସେ ବୃଥା ଗମ୍ଭୀର ହୋଇନାହାନ୍ତି କି ଜଳକା ବି ହୋଇନାହାନ୍ତି ଜ୍ଞାନାଲୋକରେ । ସେ ଜଣେ ପ୍ରେମିକ ଓ ଭକ୍ତ । ଏହି ପ୍ରେମଭକ୍ତି ତାଙ୍କ ଜୀବନକୁ କରିଛି ରସାଳ, ପ୍ରାଣବନ୍ତ ଓ ମଧୁର । କିନ୍ତୁ ପ୍ରେମଭକ୍ତିରେ ସେ କେବେ ଉତ୍ତରଳ ହୋଇନାହାନ୍ତି କି ମଦିରବିହ୍ୱଳ ହୋଇନାହାନ୍ତି । ସେ ଜଣେ କର୍ମୀ ଓ ସଂଗଠକ । କର୍ମ ତାଙ୍କୁ ବାସ୍ତବତାର ସମ୍ମୁଖୀନ କରାଇଛି । ଜ୍ଞାନ ଓ ପ୍ରେମଭକ୍ତିର ତାମସିକ ଆବେଗରୁ ମୁକ୍ତ ରଖିଛି । କିନ୍ତୁ କର୍ମ ତାଙ୍କୁ ଅବିଶ୍ରାନ୍ତ କରିନାହିଁ କି ସେ କେବେ ନିଜ ଆଡୁ ଘୋର କର୍ମରେ ପ୍ରବୃତ୍ତ ହୋଇନାହାନ୍ତି ।

ଭଗବାନ ତାଙ୍କର ଅସଂଖ୍ୟ ଛାଞ୍ଚ ଭିତରୁ ଗୋଟିଏ ଦିବ୍ୟ ସ୍ୱୟଂସମ୍ପୂର୍ଣ୍ଣ ଦିବ୍ୟଛାଞ୍ଚ ବାଛି ସେଥିରେ ହୃଦାନନ୍ଦଙ୍କୁ ଗଢ଼ି ମୂଳରୁ ସମ୍ପୂର୍ଣ୍ଣ କରି ଓ ସମ୍ପନ୍ନ କରି ତାଙ୍କୁ ଏ ପୃଥିବୀକୁ ପଠାଇଛନ୍ତି ବୋଲି ମୋର ଧାରଣା ହୁଏ । ନିଜକୁ ଅଦିବ୍ୟରୁ ଦିବ୍ୟ କରିବାର ଦୁଃସାଧ୍ୟ ସାଧନା ସେଥିପାଇଁ ତାଙ୍କୁ କରିବାକୁ ପଡ଼ିନାହିଁ । ଭଗବାନ ତାଙ୍କୁ ବହୁ ଦାୟିତ୍ୱରୁ ମୁକ୍ତ ରଖିଛନ୍ତି । କିନ୍ତୁ ସେ ସବୁବେଳେ ମୁକ୍ତି ପାଇଁ କାତର ହୋଇଛନ୍ତି । ଅଥଚ ତାଙ୍କ ଜୀବନରୁ ଜଣା ପଡ଼େନା ତାଙ୍କୁ କୋଉ ବନ୍ଧନରଜ୍ଜୁରେ କିଏ କେତେବେଳେ ବାନ୍ଧି ରଖୁଥିଲା । ସେ ସର୍ବଦା ମୁକ୍ତ ଓ ସହଜ ମଣିଷ । ଏହି ଆତ୍ମଜୀବନୀ ସମ୍ପର୍କରେ ମୋର ଶେଷ ବକ୍ତବ୍ୟଟି ହେଲା- ଏ ବହିଟି ଜଣେ ନିଷ୍କଳ ମଣିଷର ନିଷ୍କଳ ଭାଷାରେ ନିଜ ଜୀବନ କାହାଣୀର ନିଷ୍କଳ ଅଭିବ୍ୟକ୍ତି । ମୋର ବିଶ୍ୱାସ- ଏ ବହିଟିକୁ ଆଉ ଯେ କେହି ପଢ଼ିବ- ସେ ନିଶ୍ଚେ ଏ ପୃଥିବୀର ଜଣେ ଭଲ ମଣିଷକୁ ଭେଟିବ ଏବଂ ତାର ମଧୁର ସ୍ୱରରେ ତା ଜୀବନ ଗାଥା ବି ଶୁଣିବ । ହୁଏତଃ ଏ ବହିଟି ପଢ଼ି ଜଣେ ଭାବିବ- ହଜାର ପୃଷ୍ଠାର ଏହି ବହିଟି

ଜଣେ ଚମତ୍କାର ବାଗ୍ମୀଭଳି ଜଣେ ଉତ୍ତମ ମଣିଷର ପବିତ୍ର ଜୀବନ କାହାଣୀ ମୋତେ ଶୁଣାଇ ଦେଲା । ଅଥବା ଆଉ ଜଣେ ଶ୍ରଦ୍ଧାଳୁ ପାଠକ ବହିଟି ପଢ଼ିସାରି ରବୀନ୍ଦ୍ର ନାଥଙ୍କ ''ନିର୍ଝରେର ସ୍ୱପ୍ନଭଙ୍ଗ'' କବିତାଟିର ପ୍ରଥମ ପଂକ୍ତିଗୁଡ଼ିକ ଗାଇ ଉଠିବ-

''ଆଜି ଏ ପ୍ରଭାତେ ରବିକିରଣ
କିପରି ଛୁଇଁଲା ଏ ମୋ ପରାଣ
ପ୍ରଭାତ ପକ୍ଷୀର ଗାନ !
ଆରେ ମୋର, ଉଚ୍ଛୁଳି ଉଠୁଛି ପ୍ରାଣ ।''

ସତକଥା । ଏଭଳି ଏକ ଉତ୍ତମ ଗ୍ରନ୍ଥ ସାଧୁସଂଗର ପୂଣ୍ୟ ଫଳ ଦେଇଥାଏ । ଆଉ ମଧ୍ୟ ଅନ୍ତରଙ୍ଗ ପ୍ରେମୀବନ୍ଧୁର ସାନ୍ନିଧ୍ୟ ସୁଖ ଦେଇଥାଏ । ଏ ବହିଟି ପଢ଼ିସାରିବା ପରେ ମୋତେ ଲାଗିଲା- ସତେକି ହରଦ୍ୱାରର କିଶୋରୀ ଗଙ୍ଗାଙ୍କର ଛଳଛଳ ପବିତ୍ରଶୀତଳ ସଲିଳରେ ମୁଁ ବୁଡ଼ ପକାଇଲି । ମୋର ଭାଷାରେ ମୁଁ ବହୁ ବିଶିଷ୍ଟ ଗୁଣୀ ବ୍ୟକ୍ତିଙ୍କ ଆତ୍ମ-ଜୀବନୀ ପଢ଼ି ମୁଗ୍ଧ ହୋଇଛି- ଉଦ୍‌ବୁଦ୍ଧ ମଧ୍ୟ ହୋଇଛି; କିନ୍ତୁ ଗଙ୍ଗାସ୍ନାନର ଅନୁଭୂତିକେବଳ ହୃଦାନନ୍ଦଙ୍କର ଆତ୍ମ-ଜୀବନୀ ପାଠକରି ଲାଭ କଲି । ମୁଁ ଅପେକ୍ଷା କରୁଛି- ଆଶା କରୁଛି- ପ୍ରାର୍ଥନା କରୁଛି- ହୃଦାନନ୍ଦ ବାବୁ ଦୀର୍ଘଜୀବୀ ହୁଅନ୍ତୁ ଏବଂ ତାଙ୍କ ଆତ୍ମଜୀବନୀର ଦ୍ୱିତୀୟଭାଗ ପଢ଼ିବାପାଇଁ ମୁଁ ମଧ୍ୟ ସେଇ ପର୍ଯ୍ୟନ୍ତ ଦୀର୍ଘଜୀବୀ ହୁଏଁ ।

ଏହି ଅନୁପମ ଆତ୍ମଜୀବନୀଟି (ଯାହାର ପ୍ରଭାବ ଏପର୍ଯ୍ୟନ୍ତ ମୋ ଉପରୁ କଟିନାହିଁ), ଆଜି ଓଡ଼ିଶାର ମର୍ଯ୍ୟାଦାବନ୍ତ ଶାରଳା ପୁରସ୍କାରରେ ମଣ୍ଡିତ ହୋଇଥିବାରୁ ମୁଁ ତାଙ୍କ ଅନୁରାଗୀ ପାଠକ ପାଠିକାଙ୍କ ସହିତ ମୋର ପୂର୍ଣ୍ଣ ଆନନ୍ଦ ପ୍ରକାଶ କରୁଛି । ଶ୍ରୀମା ଓ ଶ୍ରୀଜଗନ୍ନାଥ ହୃଦାନନ୍ଦ ରାୟଙ୍କୁ ଦୀର୍ଘ ଓ ସୁସ୍ଥ ଜୀବନ ପ୍ରଦାନ କରନ୍ତୁ ଏବଂ ଉତ୍କଳ ଭାରତୀ ମା'ଶାରଳା ତାଙ୍କ ଲେଖନୀ ଚିର ସୃଜନଶୀଳ କରି ରଖିଥା'ନ୍ତୁ । ଏତିକି ମାତ୍ର ପ୍ରାର୍ଥନା ।



# ଶ୍ରୀ ହୃଦାନନ୍ଦ ରାୟଙ୍କ ପ୍ରକାଶିତ ପୁସ୍ତକାବଳୀ :

| ଗ୍ରନ୍ଥର ନାମ | ବିଭାଗ | ପ୍ରକାଶକଙ୍କ ନାମ | ପ୍ରକାଶନ କାଳ |
|---|---|---|---|
| ଅଦ୍ୱୈତ ବେଦାନ୍ତ ପରିଚୟ | ଦାର୍ଶନିକ ଗ୍ରନ୍ଥ | ଧର୍ମ-ଜ୍ଞାନ-ପ୍ରଚାର ମନ୍ଦିର, କଟକ | ୧୯୫୭ |
| ଭଗ୍ନ ଭାଗବତ | କବିତା | ବିକାଶ ପ୍ରତିଷ୍ଠାନ, ଜୟପୁର | ୧୯୬୩ |
| ପାଶ୍ଚାତ୍ୟ ଦର୍ଶନର ଇତିହାସ (ଆଧୁନିକଯୁଗ)- ଯୁଗ୍ମ ଲେଖକ | ଦାର୍ଶନିକ ଗ୍ରନ୍ଥ | ଓଡ଼ିଶା ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା, ଭୁବନେଶ୍ୱର | ୧୯୭୫ |
| ନବଜାତକେ ତତ୍ତ୍ୱାର୍ଥ ଖଣ୍ଡ | ପ୍ରବନ୍ଧ | ଗ୍ରନ୍ଥମନ୍ଦିର, କଟକ | ୧୯୮୧ |
| ବିଚ୍ଛନ୍ଦ ଚରଣ ପଟ୍ଟନାୟକ | ଜୀବନୀ | ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର | ୧୯୯୦ |
| Sankara as a Romantic Philosopher | ଦାର୍ଶନିକ ଗ୍ରନ୍ଥ | ଆକାଶ ପବ୍ଲିକେଶନସ୍, କଟକ | ୧୯୯୧ |
| କଳି ଭାଗବତ ସମୀକ୍ଷା (ଠାକୁର ଶ୍ରୀ ଅଭିରାମ ପରମହଂସଙ୍କ ବିରଚିତ 'କଳି ଭାଗବତ' ଗ୍ରନ୍ଥର ଏକ ଦାର୍ଶନିକ ସମୀକ୍ଷଣ) | | ଶ୍ରୀଗୁରୁ ପ୍ରକାଶନୀ, କଟକ | ୧୯୯୨ |
| Emmanuel Kant | ଦାର୍ଶନିକ ଗ୍ରନ୍ଥ | ପ୍ରକାଶ ପବ୍ଲିକେଶନସ୍, କଟକ | ୧୯୯୬ |
| ଯେମିତି ଦେଖିଛି-ଆମେରିକା- ଯେମିତି ବୁଝିଛି | ଭ୍ରମଣ ବୃତ୍ତାନ୍ତ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୯୭ |
| Dialectic | ଦାର୍ଶନିକ ଗ୍ରନ୍ଥ | ସନ୍ତୋଷ ପବ୍ଲିକେଶନସ୍, କଟକ | ୧୯୯୮ |
| ବ୍ରହ୍ମସୂତ୍ର (ଶଙ୍କର ଭାଷ୍ୟ) ୧ ଅଧ୍ୟାୟ | ଦାର୍ଶନିକ ଗ୍ରନ୍ଥ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୧୯୯୯ |
| ବ୍ରହ୍ମସୂତ୍ର (ଶଙ୍କର ଭାଷ୍ୟ) ୨ ଅଧ୍ୟାୟ | ଦାର୍ଶନିକ ଗ୍ରନ୍ଥ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୨୦୦୦ |
| ଜାଣେ ଅନୁଭବୀ ଅନୁଭବରେ | ଆତ୍ମଜୀବନୀ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୨୦୦୨ |

| | | | |
|---|---|---|---|
| ବ୍ରହ୍ମସୂତ୍ର (ଶଙ୍କର ଭାଷ୍ୟ) ୩ ଅଧ୍ୟାୟ | ଦାର୍ଶନିକ ଗ୍ରନ୍ଥ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୨୦୦୩ |
| ବ୍ରହ୍ମସୂତ୍ର (ଶଙ୍କର ଭାଷ୍ୟ) ୪ ଅଧ୍ୟାୟ | ଦାର୍ଶନିକ ଗ୍ରନ୍ଥ | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୨୦୦୪ |
| ଭକ୍ତି କଲ୍ଲୋଳ ପରିକ୍ରମା | | ଶ୍ରୀ ଗୁରୁ ପ୍ରକାଶନୀ, କଟକ | ୨୦୦୩ |
| ଶ୍ରୀ ଧବଳେଶ୍ୱର | କବିତା | ଓଡ଼ିଶା ବୁକ୍ ଷ୍ଟୋର, କଟକ | ୨୦୦୪ |

# ବିଭିନ୍ନ ଅନୁଷ୍ଠାନ ପକ୍ଷରୁ ଶ୍ରୀ ରାୟଙ୍କୁ ପ୍ରଦତ୍ତ ସମ୍ମାନ ଓ ପୁରସ୍କାରର କିୟଦଂଶ :

| ସମ୍ମାନ | ସମୟ | ଅନୁଷ୍ଠାନ |
|---|---|---|
| ସମ୍ବର୍ଦ୍ଧନା | ୧୯୬୩ | କବି ସମ୍ରାଟ ଉପେନ୍ଦ୍ର ଭଞ୍ଜ ଜୟନ୍ତୀ, ଜୟପୁର |
| ସମ୍ବର୍ଦ୍ଧନା | ୧୯୬୪ | ସୃଜନୀ, ଜାମସେଦ ପୁର |
| ସମ୍ବର୍ଦ୍ଧନା | ୧୯୭୨ | ଦର୍ଶନ ବିଭାଗ, ବକ୍ସି ଜଗବନ୍ଧୁ ବିଦ୍ୟାଧର ମହାବିଦ୍ୟାଳୟ, ଭୁବନେଶ୍ୱର |
| ସମ୍ବର୍ଦ୍ଧନା | ୧୯୮୮ | ରେଭେନ୍ସା ସାନ୍ଧ୍ୟ ମହାବିଦ୍ୟାଳୟ, ଅନ୍ତେବାସୀବୃନ୍ଦ, କଟକ |
| ସମ୍ବର୍ଦ୍ଧନା | ୧୯୮୮ | ସଂସ୍କୃତ ବିଭାଗ, ରେଭେନ୍ସା ସାନ୍ଧ୍ୟ ମହାବିଦ୍ୟାଳୟ, କଟକ |
| ସମ୍ବର୍ଦ୍ଧନା | ୧୯୮୮ | ଶାରଳା ସ୍ମାରକୀ, ତେନ୍ତୁଳି ପଦା, କଟକ |
| 'ଭଞ୍ଜପ୍ରବୀଣ' ସମ୍ମାନ | ୧୯୯୪ | ଭୀମସେନ ପାଠୀ ନ୍ୟାସ, ବ୍ରହ୍ମପୁର, ଗଞ୍ଜାମ |
| 'ଓଡ଼ିଶା ପ୍ରତିଭା' ପୁରସ୍କାର | ୧୯୯୪ | କଟକ ସୁରକ୍ଷା କମିଟି, କଟକ |
| ସମ୍ବର୍ଦ୍ଧନା (ତାମ୍ରଫଳକ) | ୧୯୯୪ | ଆମେରିକା ଜଗନ୍ନାଥ ସମାଜ, ଆମେରିକା |
| ସମ୍ବର୍ଦ୍ଧନା | ୧୯୯୫ | ତୁଳସୀ ସାହିତ୍ୟ ସଂସଦ, ଓଡ଼ିଶା |
| 'ସଂସ୍କୃତି ସୁଧାକର' ସମ୍ମାନ | ୧୯୯୫ | ଓଡ଼ିଶା ପୂଜ୍ୟପୂଜା ଏକାଡେମୀ |
| ଶ୍ରୀ ଜଗନ୍ନାଥ ପୁରସ୍କାର | ୧୯୯୬ | ଶ୍ରୀ ଜଗନ୍ନାଥ ଗବେଷଣା ପ୍ରତିଷ୍ଠାନ, ଭୁବନେଶ୍ୱର |

| | | |
|---|---|---|
| 'ଭଞ୍ଜ ପ୍ରତିଭା' ସମ୍ମାନ | ୧୯୯୬ | ମାହାଙ୍ଗା ବ୍ଲକ କେନ୍ଦ୍ରୀୟ ଯୁବକ ସଂଘ |
| 'ବ୍ୟାସଦେବ' ସମ୍ମାନ | ୧୯୯୬ | ଓଡ଼ିଆ ସମ୍ମିଳନୀ କାର୍ଯ୍ୟାଳୟ, ଗୌତମନଗର, ଭୁବନେଶ୍ୱର |
| 'ଜଗନ୍ନାଥ ସର୍ବସ୍ୱ' ସମ୍ମାନ | ୧୯୯୭ | ଅନ୍ତର୍ଜାତୀୟ ଚାରଣ ଗୋଷ୍ଠୀ, ନୀଳାଦ୍ରି ସତସଙ୍ଗ, ଶ୍ରୀ ଜଗନ୍ନାଥ ମନ୍ଦିର, ପୁରୀ |
| 'ସଂଧାନ' ସମ୍ମାନ | ୧୯୯୭ | 'ଚିର ସଂଧାନ', ଭୁବନେଶ୍ୱର |
| ସାହିତ୍ୟ ଏକାଡ଼େମୀ ସମ୍ମାନ (ତମ୍ରଫଳକ) | ୧୯୯୭ | ଓଡ଼ିଶା ସାହିତ୍ୟ ଏକାଡ଼େମୀ, ଭୁବନେଶ୍ୱର |
| ସମ୍ବର୍ଦ୍ଧନା | ୧୯୯୯ | ଓଡ଼ିଆ ସାହିତ୍ୟ ସଂସ୍କୃତି ସମାଜ, କଟକ |
| 'ବାଗ୍ମୀ ଶିରୋମଣି' ସମ୍ମାନ | ୧୯୯୯ | ଅଙ୍କୁର ସାହିତ୍ୟ ସଂସ୍କୃତି ସଂସଦ, ବାଲିକୁଦା |
| ସମ୍ବର୍ଦ୍ଧନା | ୨୦୦୦ | ଲାୟନସ୍ କ୍ଲବ, କଟକ |
| ସମ୍ବର୍ଦ୍ଧନା | ୨୦୦୦ | ଶ୍ରୀମଦ୍ ଭାଗବତ ସମିତି, କଳିଙ୍ଗଲେନ୍, ମହତାବ ରୋଡ୍, କଟକ |
| ସମ୍ବର୍ଦ୍ଧନା | ୨୦୦୦ | ଗୋଦାବରୀଶ ସାହିତ୍ୟ ସଂସଦ, ଭୁବନେଶ୍ୱର |
| ସମ୍ବର୍ଦ୍ଧନା | ୨୦୦୦ | ଅଲ୍ ଓଡ଼ିଶା ଫିଲୋସଫି ଆସୋସିଏସନ |
| 'ବିଦଗ୍ଧ କବି ଅଭିମନ୍ୟୁ' ସମ୍ମାନ | ୨୦୦୧ | ଅଭିମନ୍ୟୁ ସ୍ମୃତି ସଂସଦ, ଭୁବନେଶ୍ୱର |
| ସମ୍ବର୍ଦ୍ଧନା | ୨୦୦୧ | ଜିଲ୍ଲା ଉତ୍ସବ କମିଟି, ଜଗତସିଂହପୁର |
| ସମ୍ବର୍ଦ୍ଧନା | ୨୦୦୧ | ପ୍ରଫେସର ଆର୍ତ୍ତବଲ୍ଲଭ ସ୍ମୃତି ସଂସଦ, କଟକ |
| ସମ୍ବର୍ଦ୍ଧନା | ୨୦୦୧ | ବାଙ୍କି ମହୋତ୍ସବ-୨୦୦୧, ବାଙ୍କି କଟକ |
| ସମ୍ବର୍ଦ୍ଧନା (ତାମ୍ରଫଳକ) | ୨୦୦୨ | ପୂଜ୍ୟପାଦ ବାବା ବଳିଆ ଶିଶୁ ଅନନ୍ତ ଆଶ୍ରମ, ଅରିଲୋ, ଜଗତସିଂହପୁର |
| 'ଧର୍ମଚକ୍ର' ସମ୍ମାନ (ଫଳକ) | ୨୦୦୨ | ମାହାଙ୍ଗା-ବଡ଼ଚଣା ସାହିତ୍ୟ ସଂସ୍କୃତି ପରିଷଦ |
| 'ଓଡ଼ିଆ ଭୂଷଣ' ସମ୍ମାନ | ୨୦୦୨ | ସତ୍ୟବାଦୀ ନାଗରିକ କମିଟି, ସାକ୍ଷୀଗୋପାଳ |
| ସମ୍ବର୍ଦ୍ଧନା | ୨୦୦୨ | କାମେଶ୍ୱର ମହାଦେବ ସଂସ୍କୃତିକ ଅନୁଷ୍ଠାନ, ଡାଉଳିଆ ଗଞ୍ଜ, କଟକ |

| | | |
|---|---|---|
| 'ସାହିତ୍ୟଶ୍ରୀ' ସମ୍ମାନ | ୨୦୦୨ | ସାହିତ୍ୟ କଳା ପରିଷଦ |
| 'ବେଦାନ୍ତ ବାଗୀଶ' ସମ୍ମାନ | ୨୦୦୨ | ବେଦାନ୍ତ ପ୍ରଚାର ପରିଷଦ୍ ଶ୍ରୀ ବିଦ୍ୟା ସଂସ୍କୃତି ସଂସ୍ଥାନ, ଭୁବନେଶ୍ୱର |
| 'ଗୋବିନ୍ଦ ନାରାୟଣ ଆଧ୍ୟାତ୍ମିକ ସାହିତ୍ୟ' ସମ୍ମାନ | ୨୦୦୨ | ଉତ୍କଳ ସାହିତ୍ୟ ସମାଜ, ଶତବାର୍ଷିକୀ |
| ସମ୍ବର୍ଦ୍ଧନା | ୨୦୦୩ | ଗଣପତି ଶିଶୁମନ୍ଦିର ପରିବାର, ଝାଞ୍ଜିରୀ ମଙ୍ଗଳା, କଟକ |
| 'ମଧୁ ସ୍ୱାଭିମାନ' ସମ୍ମାନ (ଫଳକ) | ୨୦୦୩ | ରେଭେନ୍ସା କଲିଜିଏଟ୍ ସ୍କୁଲ ପୁରାତନ ଛାତ୍ର ସଂସଦ, କଟକ |
| ରାଜ୍ୟସ୍ତରୀୟ ପୀତାମ୍ବର ସ୍ୱାଇଁ ବାଗ୍ମିତା ପୁରସ୍କାର | ୨୦୦୩ | ପୀତାମ୍ବର ସ୍ୱାଇଁ ସ୍ମୃତି ସଂସଦ, ଭଦ୍ରକ |
| ଚାରଣ ପ୍ରୀତି ସମ୍ମାନ | ୨୦୦୩ | ଚାରଣ ଗୋଷ୍ଠୀ |
| ଅରୁଣ ସାହିତ୍ୟ ସମ୍ମାନ | ୨୦୦୪ | ମାଣିକ ସ୍ୱାଇଁ ସ୍ମାରକୀ, ଅରୁଣ ସାହିତ୍ୟ ସମ୍ମାନ, ଅରୁଣୋଦୟ ନଗର, କଟକ |
| ସମ୍ବର୍ଦ୍ଧନା | ୨୦୦୪ | ଦର୍ଶନ ବିଭାଗ, ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକ |
| ମାନସିଂହ ସମ୍ମାନ (ତାମ୍ରଫଳକ) | ୨୦୦୪ | ସାରଳା ସାହିତ୍ୟ ସଂସଦ, କଟକ |
| ଶିଶୁ ଅନନ୍ତ ସମ୍ମାନ (ତାମ୍ରଫଳକ) | ୨୦୦୪ | ଶିଶୁ ଅନନ୍ତ ସ୍ମୃତି ସଂସଦ, ବାଲିପାଟଣା, ଖୋର୍ଦ୍ଧା |
| ଶାରଳା ପୁରସ୍କାର | ୨୦୦୫ | ଇଣ୍ଡିଆନ ମେଟାଲ୍ସ ପବ୍ଲିକ ଚାରିଟେବୁଲ ଟ୍ରଷ୍ଟ, ଭୁବନେଶ୍ୱର |



*ଡି.ଟି.ପି :* ସନ୍ତୋଷ ଡି.ଟି.ପି, *ମୁଦ୍ରଣ :* ରେଖାପ୍ରେସ୍, ବାଙ୍କିସାହି, କଟକ-୯,
ଫୋନ୍-୦୬୭୧- ୨୬୧୭୯୮୧